# ଯଜ୍ଞସୂତ୍ର

## ନାଟକ



ବ୍ରଜବାସୀ
ବାବାଜି ଶ୍ରୀ ବୈଷ୍ଣବଚରଣ ଦାସ

ବ୍ରଜବାସୀ

ଗୋସ୍ୱାମୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ବିରଚିତ

# ରାଈ-ରାଜା ନାଟକ ।



ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।

ଦ୍ୱିତୀୟ ସଂସ୍କରଣ ।

Printed by R. N. Rath,
at the Satyabadi Press,
CUTTACK,
1929.

ମୂଲ୍ୟ ୫ ୦ ୵ ଦୁଇଅଣା ମାତ୍ର ।

# ରାଈରାଜା ନାଟକର

## ଲୀଳା ବିନୋଦକାରୀମାନଙ୍କ ପରିଚୟ ।

---

ଶ୍ରୀକୃଷ୍ଣ—ନନ୍ଦନନ୍ଦନ ବା ବ୍ରଜଯୁବରାଜ ।
ଶ୍ରୀରାଧା—ବୃଷଭାନୁ ରାଜାଙ୍କ ଜେମା ।
ଚନ୍ଦ୍ରାବଳୀ—ଚନ୍ଦ୍ରଭାନୁଙ୍କ ଜେମା ।
ବୃନ୍ଦା—ଶ୍ରୀରାଧାଙ୍କ ଦୂତିକା ।
ଲଳିତା—ଶ୍ରୀରାଧାଙ୍କ ପ୍ରଧାନ ସଖୀ ।
ବିଶାଖା—ଶ୍ରୀରାଧାଙ୍କ ପ୍ରିୟନର୍ମ୍ମ ସଖୀ ।
ଚମ୍ପକଲତା—ଶ୍ରୀରାଧାଙ୍କ ପ୍ରିୟ ସଖୀ ।
ଚିତ୍ରା— " "
ତୁଙ୍ଗବିଦ୍ୟା— " "
ଇନ୍ଦୁରେଖା— " "
ସୁଦେବୀ— " "
ରଙ୍ଗଦେବୀ— " "
ଶୈବ୍ୟା—ଚନ୍ଦ୍ରାବଳୀଙ୍କ ପ୍ରିୟସଖୀ ।
ପଦ୍ମା—ଚନ୍ଦ୍ରାବଳୀଙ୍କ ଅନ୍ତରଙ୍ଗ ସଖୀ ॥

ପ୍ରକାଶ ଥାଉକ ଯୋଗପୀଠରେ ଏମାନଙ୍କର ବର୍ଣ୍ଣ, ବସ୍ତ୍ର, ବୟସ, ସେବା, ଇତ୍ୟାଦି ବର୍ଣ୍ଣିତ ଅଛି ।

( ନଃ )
ବ୍ରଜବାସୀ

# ଭୂମିକା ।



କୃଷ୍ଣ ଯେ ସ୍ୱୟଂ ପରଂବ୍ରହ୍ମଙ୍କ ପୂର୍ଣ୍ଣ ଅବତାର ଏବଂ ଶ୍ରୀରାଧା ଯେ ଆଦ୍ୟା ମୂଳ ପ୍ରକୃତି, ଏ ରାଇରାଜା ନାଟକରେ ତାହାହିଁ ବିଶଦରୂପେ ପ୍ରଦର୍ଶିତ ହେଲା । ଅଧିକନ୍ତୁ ଆଦ୍ୟାଶକ୍ତି ଯେ ତ୍ରିଲୋକୀ ତଳେ ପ୍ରଧାନା; ସେହି ଶକ୍ତି ବିନା ଯେ କି ପରମପୁରୁଷ ଭଗବାନ ସେ ମଧ୍ୟ କୌଣସି କାର୍ଯ୍ୟରେ ସମର୍ଥ ନୁହନ୍ତି । ତାହାହିଁ ସମସ୍ତ ଭକ୍ତବୃନ୍ଦରେ ଦେଖାଇବା ନିମିତ୍ତ ଶ୍ରୀମତୀ ରାଧିକାଙ୍କୁ ବୃନ୍ଦାବନରେ ରାଜା କରି ସ୍ୱୟଂ ତାଙ୍କର ଚରଣତଳରେ ଦାସରୂପେ କଟୁଆଳ ବେଶ ଧାରଣ କରି ଉପସ୍ଥିତ ହୋଇଥିଲେ; ଏହି ଗୀତାଭିନୟ ନାଟକ ଖଣ୍ଡିକ ପାଠକଲେ ଅଥବା ରଙ୍ଗମଞ୍ଚରେ ଦର୍ଶନ କଲେ ଭାବୁକ ରସିକ ଭକ୍ତମାନେହିଁ ତାହା ସମ୍ୟକ୍ ହୃଦୟଙ୍ଗମ କରିପାରିବେ ଏବଂ ସର୍ବସାଧାରଣରେ ମଧ୍ୟ ଅତି ସହଜେ ବୁଝି ପାରିବେ । ଏଥିପାଇଁ ଏହି ନାଟକର ଭାଷା ଓ ଗୀତ-ଗୁଡ଼ିକ ଯେତେଦୂର ସରଳ ଓ ପ୍ରାଞ୍ଜଳ ହେବା ସମ୍ଭବ, ତାହା କରିବାରୁ ଯଥାସାଧ୍ୟ ଯତ୍ନର ତ୍ରୁଟି ହୋଇ ନାହିଁ । ଏହାର ମର୍ଯ୍ୟାଦା ଯେଉଁ ସଜ୍ଜନମାନେ ଜାଣନ୍ତି ତାଙ୍କର ହସ୍ତରେ ଏ ପୁସ୍ତକ ଅରପିନ ରହୁ କାମଧେନୁ ମିତି ।

ଶ୍ରୀ ଶ୍ରୀରାଧାଗୋବିନ୍ଦ ରାସଲୀଳା ସମିତି
ପୋଃ ସାକ୍ଷୀଗୋପାଳ, ପୁରୀ
ତା ୧୦।୩।୫୪

ଭକ୍ତ କୃପାଭିକ୍ଷୁ
ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀ
ସମ୍ପାଦକ

# ପାଶାଖେଳ
# ଓ
# ରାଈରାଜା ନାଟକ ।

## ପ୍ରଥମ ଅଙ୍କ

( ପ୍ରଥମ—ଦୃଶ୍ୟ )

ନିଭୃତ ନିକୁଞ୍ଜ ।

( ଉତ୍‌ସବେଶରେ ଶ୍ରୀକୃଷ୍ଣ, ଶ୍ରୀରାଧା, ଚନ୍ଦ୍ରାବଳୀ ଓ ଅନ୍ୟାନ୍ୟ ସଖିଗଣ ଆସୀନା )

ଶ୍ରୀକୃଷ୍ଣ—( ଶ୍ରୀରାଧାଙ୍କ ପ୍ରତି ) ପ୍ରିୟେ ! ଆଜି ତୁମ ସହିତ ପାଶା ଖେଳିବାକୁ ମୋର ଶ୍ରଦ୍ଧା ହେଉଛି, ଆସ ପାଶା ଖେଳିବା ।

ଶ୍ରୀରାଧା—ପ୍ରାଣେଶ୍ୱର ! ଆପଣଙ୍କର ଯେ ଇଚ୍ଛା ।

ଲଳିତା—ନାଗର ! ଆମ ରାଧାଙ୍କ ସଙ୍ଗେ କଣ ତେମେ ଖେଳିପାରିବ ?

ଶ୍ରୀକୃଷ୍ଣ—ପଶାପାଲି ଆଣ, ହାରିଜିଣ ଜଣାପଡ଼ିବ ।

ଶ୍ରୀରାଧା—( ହସିକରି ) ଲଳିତେ ! ପଶାପାଲି ଆଣ ।

ଲଳିତା—ନାଗର ! ଯେବେ ଆମ ରାଧା ହାରିବେ, ତେବେ ତାଙ୍କ ଇନ୍ଦ୍ରନୀଳମଣି ହାରଟି ବାଜି ରହିଲା । ଆଉ ଯଦି ତେମେ ହାରିବ—କଅଣ ବାଜି ରଖିବ ?

ଶ୍ରୀକୃଷ୍ଣ—( ହସି ) ମୋର ଏହି ମୋତିହାରଟି ବାଜି ରହିଲା ।

ବିଶାଖା—ନାଗର ! ନା ନା, ତେମେ ଏ ଯେଉଁ ବୁଲୁଛ ମୁରଲୀଟିର ସାହାଯ୍ୟରେ ଏତେ କୁଟକୁଟ କରୁଛ, ସେହି ମୁରଲୀଟି ବାଜି ରଖ ତେବେ ରାଧା ଖେଳିବେ ।

ଲଳିତା—ସଖି ! ସତ କହିଲ, ସେହି ମୁରଲୀ ହିଁ ରହନ୍ତୁ ।

ଶ୍ରୀରାଧା—( ମୃଦୁ ମୃଦୁ ହସି ମୁଖ ତଳକୁ ରଖି ଲଜ୍ଜା କରିବା )

ଶ୍ରୀକୃଷ୍ଣ—ଲଳିତେ ! ଏହା କିପରି କହୁଛ ? ଏ ମୁରଲୀର ଗୁଣ କଣ ତୁମେମାନେ ଜାଣିନାହିଁ ? ଆଉ ତୁମେମାନେ ଯାହାକୁ ଲୁଚେଇ ରଖି ପାରିବ ନାହିଁ ।

ଲଳିତା—କାହିଁକି ?

ଶ୍ରୀକୃଷ୍ଣ—ଯାହାକୁ ତୁମେ ଯେଉଁଠାରେ ଲୁଚାଇବ ସେଠାରେ ବିନା ଫୁଙ୍କରେ ବାଜିଉଠିବ, ତେବେ କଣ ତୁମେମାନେ ଆଉ ଲାଜରେ ବାଟ ଚାଲିପାରିବ ?

ଲଳିତା—ଆମେ ବାନ୍ଧିକରି ରଖିଲେ ଏ କଅଣ କରିବ ?

ଶ୍ରୀକୃଷ୍ଣ—ଯାହାର ଏପରି ଅଦ୍ଭୁତ ଶକ୍ତି ଅଛି ଯେ, ସବୁପ୍ରେମ ବନ୍ଧନ-ଡୋର ଛିଣ୍ଡାଇ ଦେଇପାରେ ।

ବିଶାଖା—ତେବେ ତେମେ କଅଣ ହିଁ ରଖିବ ?

ଶ୍ରୀକୃଷ୍ଣ—ମୁଁ ମନେକରେଁ କି ଯଦି ତମ ରାଧା ହାରିବେ ତେବେ ମୁଁ ହାସ୍ୟ ରହସ୍ୟରେ ଦଶବାର ଚୁମ୍ବନ ଦେବି । ଆଉ ଯଦି ମୁଁ ହାରିବି ତେବେ ରାଧା ଦଶବାର ଚୁମ୍ବନ ଦେବେ । ହାର ହିଁରେ କିଛି ପ୍ରୟୋଜନ ନାହିଁ ।

ଲଳିତା—ନାଗର ! ଅମ ଢେମାଦେଈଙ୍କ ତା ଅପେ ନାହିଁ । ଅଳଙ୍କାର ହିଁ ରଖ ।

ଶ୍ରୀକୃଷ୍ଣ—ତେବେ ତାଙ୍କର କେଉଁ ଅଳଙ୍କାର ପ୍ରଥମ ହିଁ ?

ଲଳିତା—ତାଙ୍କର କଣ୍ଠମାଳମଣି ନାସିକା ବେଶର ହିଁ ରହିବ, ଯଦି ଖେଳରେ ଜିତିବେ, ତେବେ ତମ ଗୁଞ୍ଜହାରକୁ ଅମେମାନେ ବଳପୂର୍ବକ ବାହାର କରିନେବୁଁ ।

ବିଶାଖା—ସଖି ଲଳିତେ ! ତା ନୁହେଁମ୍, ନାଗର ଯଦି ହାରିବେ ତେବେ ତାଙ୍କ ମୟୂରଚନ୍ଦ୍ରିକା ଚୂଳଟିକି ଅମେମାନେ

କାଢିନେବା, ଯେବେ ଜିଣିବେ ତେବେ ରାଧାଙ୍କର ଏହି ମାଲାଗୁଡ଼ିକ ନେବେ । ଯଦି ଖେଳରେ ସମାନ ହୁଏ ତେବେ ଧନୀ ଆମର ପ୍ରେମାଲିଙ୍ଗନ ସହିତ ଦଣ୍ଡବତ ନମସ୍କାର ଦେବେ ।

ଲଳିତା—ଆଉ ମଧ୍ୟ ଦ୍ୱିତୀୟ ବାର ହାରିଲେ, ନାଗରଙ୍କ ନୂପୁର କଙ୍କଣ ଛଡ଼ାଇ ରଖିବା, ଆମ ରାଧା ବୈଜୟନ୍ତୀ ମାଳାଟି ଦେବେ ।

( ଏହା କହି ପଶାପାଲି ପକାଇବା ଅଭିନୟ )

ବିଶାଖା—ନାଗର ! ତମର କେଉଁ ସାର ନେବାକୁ ଇଚ୍ଛା, କୁହ ।

ଶ୍ରୀକୃଷ୍ଣ—ତମ ରାଧା ଅଗ ସାର ବାଛି ନିଅନ୍ତୁ ।

ବିଶାଖା—ସଖି ରାଧେ ! ତମର କେଉଁ ସାର ପ୍ରତି ଇଚ୍ଛା ହେଉଛି, ବାଛି ନେଲ ।

ଶ୍ରୀରାଧା—( ସଲଜ୍ଜେ, ନାଲି, ନାଲି ସାର ବାଛି ନେବା ଅଭିନୟ । )

ଶ୍ରୀକୃଷ୍ଣ—( ହଳଦୀ କାଳିସାର ନେବା ଅଭିନୟ । )

( ପ୍ରଥମେ ଶ୍ରୀକୃଷ୍ଣ )

ଶ୍ରୀକୃଷ୍ଣ—ପଶାକାଠି ଧରି ଦାନ ଡାକିବା ଅଭିନୟ ।

( ବାର, ବାର, ବାର, ଦଶଦାନ ପଡ଼ିବା )

ଶ୍ରୀରାଧା—ପଶାକାଠି ଧରି ଦାନ ଡ଼ାକିବା ଅଭିନୟ, ।

( ଦଶ, ଦଶ, ଦଶ, ଦଶଦାନ ପଡ଼ିବା )

ଲଳିତା—( ତାଳମାରି ହସି ) ନାଗର ! ତେମେ ହାରିଲ, ଆମ ରାଧାଙ୍କର ଜୟ ହେଲା ।

ସଖିଗଣ—( ତାଳମାରି ହସି ହସି ) ଜୟ ରାଧେ (ତିନିଥର କହିବା)

ଲଳିତା—ସଖିଏ ଲୋ ! ନାଗରଙ୍କଗଳାରୁ ଗୁଞ୍ଜହାର ଆଉ ଶ୍ରୀହସ୍ତରୁ କଙ୍କଣ ଛଡ଼ାଇ ଆଣିବନି ।

ସଖିଗଣ—( କଙ୍କଣ ଛଡ଼ାଇ ଆଣିବା ଅଭିନୟ )

ଶ୍ରୀକୃଷ୍ଣ—( ଲଜ୍ଜା ସହିତ ) ଦେଖ ଏହିଥର ମୋର ଜିଣା ହେବ ।

( ଏହା କହି ଡ଼ାକିବା ) ପଞ୍ଚ ଚଉବାଣ ।

( ବାଡି—ଦୁଗା, ଦାନ ପଡ଼ିବା )

ସଖିଗଣ—( ତାଳମାରି ) ଜୟ ଗ୍ରଟଧ (୩ବାର ଉଚ୍ଚସ୍ୱରରେ କହିବା)

ଲଳିତା—ନାଗର ! ଅଜ ଗୃହ୍ରମ୍ଭ କରନାହିଁ ।
ଏଇଥର ମୁରଲୀଟି ଦେବାକୁ ହେବ ।

ଚନ୍ଦ୍ରା—ଲଳିତେ ! ଦେବାକୁ ହେବବୋଲି କଣ କହୁଛମ, ତାଙ୍କ
ସେଥିରେ ଆଉ ଅଧିକାର ନାହିଁ ଶୀଘ୍ର ଛଡ଼େଇ ଆଣ ।

ଲଳିତା—ନାଗର ! ଆଣ ମୁରଲୀ ଆଉ, ( ଏହା କହି ବଂଶୀ ଛଡ଼ାଇ
ନେବା )

ଶ୍ରୀକୃଷ୍ଣ—ଲଳିତେ ! ଦେଖ ଏଇବାର ମୁଁ ଜିଣିଲେ ତମ ସମସ୍ତଙ୍କ
ପଞ୍ଚସ୍ଥ ଅଳଙ୍କାର ନେବି ।

ଲଳିତା—ହିଁ, ହିଁ ଜିଣିବା ତମ ମୁଖରୁ ଜଣାଯାଉଚି । ହଉ ଖେଳ ।

ଶ୍ରୀକୃଷ୍ଣ—(ଦାନଡାଙ୍କ ବାଡି ଗଡ଼ାଇବା ଅଭିନୟ )
ଶେଷରେ ହାରିବା ପରି ।

ସଖିଗଣ—( ତାଳମାରି ହସି ହସି ) ଲମ୍ପଟ ନାଗର !
ଆଉ ପଣ କଲେ କଣ ହେବ, ଶୀଘ୍ର ମୟୂରଚନ୍ଦ୍ରିକା ଆଉ
ପୀତଧଡ଼ା ଦିଅ ।

( ଏହା କହି ଛଡ଼ାଇ ନେବା ଅଭିନୟ )

ଶ୍ରୀକୃଷ୍ଣ—ସଖି ଲଳିତେ ! ମୁଁ ପ୍ରାର୍ଥନା କରୁଛି, ଏଇବାର ଖେଳରେ
ଯଦି ମୁଁ ହାରେ ତେବେ ତମମାନଙ୍କର ଯେ ଇଚ୍ଛା ତାହା
କରିପାରି, ଯଦି ଜିଣେ ମୋ ମୁରଲୀଟି ମୋତେ ଦେବ,
ସେ ମୋର ଜୀବିକା ।

ବିଶାଖା—ମୋହନ ! ଏହି ମୁରଲୀ ଲାଗି ଆମେମାନେ କେତେ
ଅବସ୍ଥା ହେଉଛୁଁ ; ଅଉ କେବେହେଁ ମୁରଲୀ ଦେବୁଁ ନାହିଁ ।

ଲଳିତା—ବିଶାଖେ ! ଯା କହନ୍ତି, ଥରେ ଖେଳ ହେଉ, ପରେ ସବୁ
ଜଣାଯିବ ( ଏହା କହି ପାଲି ପ୍ରସାରିବା )

ଶ୍ରୀକୃଷ୍ଣ—[ ରଙ୍ଗ ହଳଦୀ ସାର ବାଛିନେବା ଅଭିନୟ, ]

ଶ୍ରୀରାଧା—( କାଳୀ ପଡସାର ନେବା ଅଭିନୟ, ଦୁଇପାର୍ଶ୍ୱରେ ବୃନ୍ଦା ଚନ୍ଦ୍ରାବଳୀ ସାର ଗୁଳିବା ଅଭିନୟ ।

ଶ୍ରୀକୃଷ୍ଣ—( ଦାନ ଡାକିବା ଅଭିନୟ ) ପଢ଼ ଅଠର ।

ଶ୍ରୀରାଧା— „ ପଢ଼ ଅଠର ।

ଶ୍ରୀକୃଷ୍ଣ— ( ଦାନ ଡାକିବା ଅଭିନୟ ) ପଢ଼ ପନ୍ଦର ।

ଶ୍ରୀରାଧା—( ମଉଳା ହୋଇ ରହିଯିବା ଅଭିନୟ )

ଲଳିତା— ରାଧେ ! ମଉଳ ହୋଇ ରହିଯାଉଛ କାହିଁକି ?

ଶ୍ରୀରାଧା—ସଖି ! କଅଣ କରିବି ?

ଲଳିତା—କୃଷ୍ଣ ଘୁମରି କାଟି ପକାଅ ମ ।

ଶ୍ରୀରାଧା—( କୃଷ୍ଣ କୃଷ୍ଣ ଘୁମରି କାଟି ଗଡ଼ାଇବା )

( କାଟି ପନ୍ଦର ପଡ଼ିବା ସମୟରେ ରାଧା ପକ୍ଷ ସଖିଗଣ ହସି ହସି କୃଷ୍ଣଙ୍କଠାରୁ ସମସ୍ତ ଅଲଙ୍କାର ଛଡ଼ାଇ କରି ନେବା ଅଭିନୟ )

ଲଳିତା—ସଖି ଚନ୍ଦ୍ରାବଳୀ ! ତେମେ ଆଜ ବଂଶୀ ଦିଅ ନା ।

ବିଶାଖା— ଲଳିତେ ! ତେମେ ମକରକୁଣ୍ଡଳ ଛଡ଼ାଇବଟି ?

ଚନ୍ଦ୍ରାବଳୀ-ବିଶାଖେ ! ତେମେ ଅଙ୍ଗୁଳିରୁ ମୁଦ୍ରିକାଯାକ ବାହାର କରି ନେବଟି ?

ଶ୍ରୀରାଧା—( ମନେ ମନେ ହସି ହସି ) ସଖିଏ ଲୋ ! ପ୍ରାଣନାଥଙ୍କୁ ଆଉ ହଟହଟା କରନା, ତାଙ୍କୁ ଛାଡ଼ିଦିଅ ।

ଲଳିତା—ରାଧେ ! କିପରି ଛାଡ଼ିବା ବୋଲି କହୁଛ, ଇଏ ଥରେ "ରାଧା ଜୟ" ବୋଲି କହନ୍ତୁ ।

ବିଶାଖା—ନାଗର ! ତେମେ (ରାଧା ଜୟ) ବୋଲି ନ କହିବା ପର୍ଯ୍ୟନ୍ତ କିଣ ଆମେମାନେ ତମକୁ ଛାଡ଼ୁଛୁ ?

ଶ୍ରୀକୃଷ୍ଣ—ହଉ ତେବେ କହୁଛି,

ଗୀତ ।

ଜୟ ଜୟ ଜୟ ରାଧେ ! ବୃନ୍ଦାବନେଶ୍ୱରୀ ।
ଜୟ ଜୟ ଜୟ ରାଧେ ! ନବୀନକିଶୋରୀ ଗୋ ॥
ଜୟ ଜୟ ଜୟ ରାଧେ ! ପରାଣଈଶ୍ୱରୀ ।
ଜୟ ଜୟ ଜୟ ରାଧେ ! ଭାନୁରକୁମାରୀ ଗୋ ॥
( ବ୍ରଜବାସୀ )

ସଖିଗଣ—( ହସି ୨ ) ମୋହନ ! ଏଥର ତମ ଠାଣ ବୁଝିଲେ ଗଲ

ଗୀତ ।

କାଳନ୍ଦୀକୂଳକୁ ମୋ ସଙ୍ଖାଳ—ବୃତ୍ତେ ।
ହେ ମୋହନ ତୁମ୍ଭ ଠାଣ ଗଲୁଣି କେଣିକ ହେ । ଘୋଷା ।
କେତେ କରୁଥିଲ ଅଙ୍ଗ, କାହିଁ ଗଲ ସେ ମୁରୁଜ
ଅପଣା ମନରେ ବାଙ୍ଗ, ପାରବ ଜାଣିକ ହେ । ୧ ।
ଅହେ ପ୍ରଭୁ ଭବଗ୍ରାହ, କେତେ କରୁଥିଲ ଠାହ ।
କେତେ ଭଣ୍ଡାଇଛ ପର, ଅବଳା ଜାଣିକ (ଅମ୍ଭ କିଶୋରୀ ମଣିକ) ।
( ୮ ଶୀଚନ୍ଦନ )

ଶ୍ରୀକୃଷ୍ଣ—( ବିନୟ ଦୂର୍ବକ ) ସଖି ! ଏଇଥର କ୍ଷମାକର । ପୁଣିଥରେ ଖେଳିବ ।

ଲଳିତା—ନାଗର ! ଉଦବାରରୁ ଧର୍ମଖିଡ, ଅଉ କପଟ ଖେଳିବାକୁ ସାହସ କରୁଚ ? ତା ହେବ ନାହିଁ ।

ଶ୍ରୀକୃଷ୍ଣ—ଲଳିତେ ! ଏଇଥର ଯଦି ମୁଁ ହାରିବ, ତେବେ ନିଜେ ବନ୍ଧା ରହିବ, ଅଉ ମଧ୍ୟ ରାଧା ଏ ବନରେ ରାଜା ହେବେ ।

ଲଳିତା—ତେବେ କହୁଥିଲ ହେବ ତ ?

ଶ୍ରୀକୃଷ୍ଣ—ହଁ, ମୁଁ କହୁଥିଲ ହେବ ।

ଚନ୍ଦ୍ରାବଳୀ-ତେବେ ଖେଳିବସ, ( ଲଳିତା ପ୍ରତି ) ସଖି ଲଳିତେ ! ଯ୍ୱାଙ୍କର କଥା କରିବା

ଲଳିତା—ନାଗର ! ଯଦି ଅମ ରାଧା ରାଜା ହେବେ, ତେମେ କନ୍ଥୁଆଳ ହେବବୋଲି ଭଜନବାର ସତ୍ୟକର ତେବେ ଅମେମାନେ ମତ ଦେବୁଁ ।

ଶ୍ରୀକୃଷ୍ଣ—ହଁ, ସତ୍ୟ କରୁଛ ।

ଗୀତ ।

ସତ୍ୟ ସତ୍ୟ ସତ୍ୟ ମୋର ଭଜନବାର ସତ୍ୟ ।
ହାରିଲେ ମୁଁ ଏହିବାର ହେବ ତାଙ୍କ ଭୃତ୍ୟ ସଖି ଲଳିତେ ଗୋ ।୧।
ବୃନ୍ଦାବନେ ରାଜା ହେବେ ରାଇ ବିନୋଦନୀ ।
କନ୍ଥୁଆଳ ହେବ ମୁହିଁ ତାଙ୍କ ଅଜ୍ଞା ମାନ ସଖି ଲଳିତେ ଗୋ । ୧ ।
ଯଦି ଖେଳରେ ହାରିବେ କିଶୋରୀ ରାଧିକା ।
ତେବେ ବୃନ୍ଦାବନେ ମୁହିଁ ରାଜା ହେବ ଏକା ସଖି ଲଳିତେ ଗୋ ।୩।

ଶ୍ରୀରାଧା—ସଖି ଲଳିତେ ! ନାଗର ଭଲକଥା କହୁଛନ୍ତି । ଏବେ ସ୍ୱାଙ୍କ କଥା ରଖି ପୁଣି ଥରେ ଖେଳ ଅରମ୍ଭ କରିବା ।

ଲଳିତା—ମୋହନ ! ତେବେ ଖେଳିବସ ।

( ଏହାକହି ଖେଳ ଖେଳିବା ଓ ଶେଷରେ ଶ୍ରୀକୃଷ୍ଣ ହାରିବା ଦେଖି ସଖିଗଣ କରତାଳି ମାରି ଜୟ ରାଧେ ରାଧେ ବୋଲି ହୁଳହୁଳି ଦେବା ଅଭିନୟ । )

ଚନ୍ଦ୍ରାବଳୀ-ନାଗର ମୋହନ ! ତେମେ ପ୍ରଥମେ ବଂଶୀ ହାରିଲ, ଦ୍ୱିତୀୟରେ ଅବ୍ଦରଣ ହାରିଲ, ଅଉମଧ ତୃତୀୟରେ ଅଙ୍ଗଣା ଶ୍ରୀଅଙ୍ଗକୁ ହାରିଲ, ଏବେ କ ବଦ୍ଧର ?

ଶ୍ରୀକୃଷ୍ଣ—ତମମାନଙ୍କର ଯେ ଇଚ୍ଛା । -

ଚନ୍ଦ୍ରାବଳୀ—ଏ ଥର ଅମରାଧା ରାଜା ହେବେତ ?

ଶ୍ରୀକୃଷ୍ଣ—( ଲଜ୍ଜାରେ ମୁଖତଳକୁ ରଖିବାଅଭିନୟ )

ଲଳିତା—ରାଧେ ! ଏ ନାଗର ତମର କିଣିବା ଧନ ହେଉଛନ୍ତି, ସ୍ୱାଙ୍କୁ ଯତ୍ନକରି ପ୍ରେମପାଶରେ ବାନ୍ଧିରଖି ତମ ଇଚ୍ଛା ଯାହା ତାହା କର ।

ଶ୍ରୀରାଧା—(ଶ୍ରୀକୃଷ୍ଣଙ୍କୁ ଶୋଭାହୀନ ଦେଖି ଦୁଃଖରେ) ସଖି ଲଳିତେ !
ତେମେମାନେ କେତେ ନଦାରୁଣ ? ଆହା, ପ୍ରାଣବନ୍ଧୁ
ମୋର କି ନାରଖାର ଦିଶୁଛନ୍ତି । ଶ୍ରୀମୁଖଟି ମଳିନ ପଡ଼ି
ଗଲାଣି, ଅଳଙ୍କାରତକ ପିନ୍ଧେଇଦିଅ ।

ସଖିଗଣ—ଶ୍ରୀଧେ ! ଦୁଃଖ କରୁଛ କାହିଁକିମ ! ଆମେମାନେ
ପିନ୍ଧେଇ ଦଉଛୁ ଗୋ ।

(ଏହା କହି ଶ୍ରୀକୃଷ୍ଣଙ୍କୁ ଅଳଙ୍କାର ପିନ୍ଧେଇ ଦେବା ଅଭିନୟ)

ଶ୍ରୀକୃଷ୍ଣ—ପ୍ରିୟେ ! ଏ ଅଳଙ୍କାରରେ ମୋର ପ୍ରୟୋଜନ ନାହିଁ,
ମୋତେ ବଂଶୀଟି ଦେଲେ ବଡ଼ୁଉପକାର କରିବ ।

ଗୀତ ।

ଅରେ ପ୍ରାଣଧନ ।

ବଂଶୀ ଦେଇ ରଖ ନିଜ ଦାସ ପ୍ରାଣ । ଘୋଷା ।
ତୋହର କିଣିବା ଦ୍ରବ୍ୟ ସେହି, ମୋ କ୍ଷମତା ତହିଁ କିଛି ନାହିଁ ।
ତବେ ଦୟାକରି ବଂଶୀ ଦିଅ ଗୋରି ନୋହିଲେ ହେଲିଟି ମୁଁ ଉଚ୍ଛନ୍ନ,
ଅରେ ପ୍ରାଣଧନ । ୧ ।
ମୁହିଁ ଯେବେ ତୋର କିଣାଜନ, ବାଂଶରି ରଖି କି ପ୍ରୟୋଜନ ।
ଆୟୁଧ ସେ ମୋର ଶତ୍ରୁରେ ବଗ୍ଧିର ତୁ କି ନଜାଣୁ ସମାରଧନ । ୨ ।
ଅଗୋ କୃପାମୟି କୃପାକର, ତୋ ବିନା ମୋର କେ ଅଛି ଅର ।
ଦାସ ଜନ ହେବ ସେବା ନଯୋଗିବ ଏହି ବାଞ୍ଛାକରେ ମୋରମନ ।୩।
( ୬ ଶ୍ରୀଚନ୍ଦନ )

( ଏହାକହି ଶ୍ରୀମତୀଙ୍କ ଶ୍ରୀମୁଖରେ ଉତ୍ତର ପ୍ରାପ୍ତ ହେବା ଅଭିନୟ )

ସଖିଗଣ— ଗୀତ ।

ଶ୍ୟାମଘନ ହେ !

ଏ ବଂଶୀ ନ ଦେବୁ କଦାଚନ । ଘୋଷା ।
ଏହି ବଂଶୀଲାଗି ହରି ହେଲୁ ଅମ୍ଭେ ଏତେସର,
କୁଳ ଛଡ଼ାଇ ଅମ୍ଭର ବୁଲାଇଲ ବନ ହେ, ଶ୍ୟାମଘନ ହେ । ୧ ।

ଲୋକଧର୍ମ୍ମ ବେଦଧର୍ମ୍ମ, ଛଡ଼ାଇ ଆମ୍ଭ ପ୍ରାକର୍ମ୍ମ,
ଭଗାର ହୋଇ ଶବ୍ଦାନ ଏ କରୁଛି ଉଚ୍ଛନ୍ନ ହେ । ୨ ।
ଯମୁନା ନଦୀରେ ନେଇ, ଏକ୍ଷଣି ଦେବୁ ଭସାଇ,
ତେବେ ମନେ ସୁସ୍ଥ ହୋଇ ରହିବୁ ଟି ଜାଣ ହେ । ୩ ।
( ୪ ଶ୍ରୀନନ୍ଦନ )

ଶ୍ରୀକୃଷ୍ଣ—ସଖି ସେ ମୁରଲୀଟି ମୋର ପ୍ରାଣ,

ଚନ୍ଦ୍ରାବଳୀ—ନାଗର ! ଅମେ କେବେହେଁ ଦେବୁନାହିଁ ବଂଶୀ ଛଡା ଅଉ ଯାହା ମାଗିବ ତାହା ଦେଇପାରୁଁ । ଏ ବଂଶୀକି ନଷ୍ଟେ ଯମୁନାରେ ଭସାଇଦେବୁଁ ।

ଲଳିତା –ସଖି ଚନ୍ଦ୍ରାବଳି ! ଭସେଇ ଦେବା କାହିଁକି ? ଥାଉ ଅମ ରାଧା ବଜେଇବେ । ଦେଖିବା ଦେଖି, ନାଗର ମୋହନ କପର ମୋହିତ ନ ହେବେ ।

ଚନ୍ଦ୍ରାବଳୀ-ସଖି ସତ କହିଲ, ପରୀକ୍ଷା କରିବା । ( ରାଧାଙ୍କ ପ୍ରତି ) ସଖି ରାଧେ ! ଅମର ଦେଖି ବଜେଇବଟି ?

ଶ୍ରୀରାଧା—( ହସି ହସି ଚନ୍ଦ୍ରାବଳୀଙ୍କ ହାତରୁ ବଂଶୀ ନେଇ ମୁଖରେ ଲଗେଇ ଫୁଙ୍କିବା ଅନନ୍ତରସ୍ତୁ । )

ବଂଶୀ—( ଶବ୍ଦ ଶୂନ୍ୟ ହେବା )

ଶ୍ରୀରାଧା—ସଖି ! ବାଜୁନ ନାହିଁ ?

ଲଳିତା—ସଖି ରାଧେ ! ମୋହନ ତମର ନାମରେ ଜଗତକୁ ମୋହନ୍ତି ଥାନ୍ତି ନିଜ ନାମ ଧରି ବଜାଅ ।

ଶ୍ରୀରାଧା—( ନିଜନାମ ଧରି ଫୁଙ୍କିବା ଓ ବଂଶୀ ବାଜି ଉଠିବା )

ଲଳିତା—ରାଧେ ! ଦେଖିଲ ? କପରି ମଧୁର ୨ ବାଜୁଛି,

ସଖିଗଣ—ରାଧେ ! ତେମେ ବଜାଅ ଅମେମାନେ ଗୀତ ଗାଉଛୁ ।

ଶ୍ରୀରାଧା—ହଉ ତେବେ ଗାଅ ( ଏହା କହି ବଂଶୀ ବଜାଇବା )

ସଖିଗଣ— ଗୀତ ।

ଶୁଣି ଏ ବଂଶୀର ନାଦ, ସର୍ବେ ହେଲେଣି ଉନ୍ମାଦ,
କୃଷ୍ଣ ଗାନ୍ତୁ ଶତ ଶତ ଶୁଣେ ।

ଶୁଷ୍କ ତରୁ ପଲ୍ଲବଲ୍ଲ,　　　ପାଷାଣ ତରଲ ଗଲ୍ଲ,
ଭୃଙ୍ଗ ପିକ ମୂକ ହେଲେ ବନେ ଗୋ !
ସଙ୍ଗିନ ! ଭୃଙ୍ଗ ପିକ ମୂକ ହେଲେ ବନେ । ୧ ।
କମ୍ପମାନ ଶୃଙ୍ଗଅଂଶୁ,　　　ମୃଗ ମୃଗୀବନ ପଶୁ,
ଦେଖ ଗୋ ନିକଟେ ଅସିଲେଣି ।
ଯମୁନା ଉଜାଣି ବହେ,　　　ସକଳେ ଅଞ୍ଜନ ମୋହେ,
ମଦନେ ଅସ୍ଥିର ଏବେ ଶୁଣି ଗୋ, ସଙ୍ଗିନ ।୨।
ଦେଖ ଶ୍ୟାମ ମର୍ମ୍ମେ ପଶି,　　　ଧଇର୍ଯ୍ୟ ଦେଲାଣି ଧ୍ୱଂସି,
ଅଚେତନ ହୋଇ ପଡ଼ିଛନ୍ତି ।
ହାହା ରାଧେ ପ୍ରାଣ ରାଧେ,　　　ଡାକଣ ସାହି କ ବାଧେ,
କେତେ କଲବଲଟି ହୁଅନ୍ତ ଗୋ ସଙ୍ଗିନ । ୩ ।
[ ୪ ଶ୍ରୀଚନ୍ଦନ ]

ଶ୍ରୀରାଧା—ଅହା, ପ୍ରାଣବନ୍ଧୁ ମୋର ଚେତା ହଜାଇ ଦେଲେ ?
( ଏହା କହି ବସ୍ତ୍ରେ ମନେ ବଂଶୀସ୍ୱନ ବନ୍ଦ କରିବା )

ସଖିଗଣ—(ମୋହ ହୋଇ ପଡ଼ିବା )

ଶ୍ରୀରାଧା—( ତଟସ୍ଥ ହୋଇ ) ଅହା ସଖିମାନେ ମଧ ଚେତାଶୂନ୍ୟ ହୋଇ ପଡ଼ିଲେଣି ଏବେ ମୁଁ କ ଉପାୟ କରିବ ?
( ଏହାକହି ଶ୍ରୀକୃଷ୍ଣଙ୍କ ମୁଖରେ ଚୁମ୍ବଦେଇ )
ପ୍ରାଣଧନ ସଚେତ ହୁଅ ।

ଶ୍ରୀକୃଷ୍ଣ—( ସଚେତ ହୋଇ ଉଠି ବସି ) ( ରାଧାଙ୍କ ପ୍ରତି ) ପ୍ରିୟେ ! ଇଏ କଣ ? ସଖିମାନେ ଅଚେତା ହୋଇ ଯାଇଛନ୍ତି ଯେ ?

ଶ୍ରୀରାଧା—ପ୍ରାଣେଶ୍ୱର ! ଅପଣ ଅଲିଙ୍ଗନ କରି ଜଣ ଜଣ କରି ଚେତନା କରନ୍ତୁ ।

ଶ୍ରୀକୃଷ୍ଣ—ପ୍ରିୟେ ଚନ୍ଦ୍ରାବଳ ! ଉଠ (ଆଲିଙ୍ଗନ)

ଚନ୍ଦ୍ରାବଳୀ—( ଉଠିବସିବା । )

ଶ୍ରୀକୃଷ୍ଣ—ସଖି ଲଲିତେ ! ଉଠ ( ଆଲିଙ୍ଗନ କରିବା )

ଲଲିତା—ଉଠି ବସିବା ।

ଶ୍ରୀକୃଷ୍ଣ—ସଖି ବିଶାଖେ ! ଉଠ ( ଆଲିଙ୍ଗନ କରିବା । )

ବିଶାଖା—ଉଠି ବସିବା ।

( ଏହିପରି ସମସ୍ତ ସଖିଗଣ ଉଠି ବସିବା ଅଭିନୟ )

ଶ୍ରୀକୃଷ୍ଣ—( ରାଧାଙ୍କପ୍ରତି ) ପ୍ରିୟେ ! ତମ ଭାଗ୍ୟ ଧନ୍ୟ, ଆଜି ସମସ୍ତଙ୍କୁ ବଂଶୀସ୍ୱନରେ ମୋହିତ କରି ଦେଲ ।

ଶ୍ରୀରାଧା—ନାଥ ! ଆପଣଙ୍କ କୃପାରୁ କି ନା ?

ଶ୍ରୀକୃଷ୍ଣ—ନା ପ୍ରିୟେ ! ଏହା ତୁମରି ମାହାତ୍ମ୍ୟ ଛଡା ଅନ୍ୟ କିଛୁ ନୁହେଁ, ଏବେ ଆସ ତୁମେ ଏ ବୃନ୍ଦାବନରେ ରାଜାହେବ ।
ମୋର ସତ୍ୟ ରକ୍ଷା ହେଉ ( ବୃନ୍ଦାଙ୍କପ୍ରତି) ବୃନ୍ଦେ !
ରାଜ୍ୟବିଧି ଉପଚାର ସବୁ ଆୟୋଜନ କର ।

ବୃନ୍ଦା—(ସମସ୍ତ ଆୟୋଜନ କରିବା ଅଭିନୟ )

ଗୀତ ।

( ମାଧୁରୀରେ ମାଧୁରୀ-ଦ୍ରବେ )

ଆସ ଆସ ପ୍ରିୟସହି, ଆସ ଗୋ ବହିନ ।
କୃତୁହଳ ହେବେ ଆଜ୍ଞ ନାଗର ମୋହନ । ଘୋଷା ।
ବୃନ୍ଦାବନେ ରାଜା ହେବେ ଆମ୍ଭ ବିନୋଦିନୀ ।
ସେବାରେ ନିଯୁକ୍ତ ହୁଅ ସକଳ ସଜନୀ । ୧ ।
ଅଣ ଗୋ ବାଣ ଅଢ଼େଣୀ ବାନା ବଇରଖ ।
ସୁନାକର ଦଣ୍ଡଛତ୍ର ସଜାଡ଼ିଣ ରଖ । ୨ ।
ବାରତୁରୀ ଭେରୀ ବାର କାହାଳୀ ଗୋ ଆଣ ।
ଚାମର ଆଲଟ ଖଣ୍ଡା ପଙ୍ଖା ସହିତେଣ । ୩ ।
ନବରତ୍ନ ସିଂହାସନ ସାଜ ଆଗୋ ଆଳି !
ଶୁଭ ମଙ୍ଗଳ ସଙ୍ଗୀତେ ଦିଅ ହୁଳହୁଳି । ୪ ।

( ବ୍ରଜବାସୀ )

( ସଖିମାନେ ଗୀତ ଗାଇବା ସଙ୍ଗେ ସଙ୍ଗେ ରାଜା ଉପସ୍ଥିର ନିଯୋଗିବା ଅଭିନୟ )

ଲଳିତା—ସଖି ! ଆମ ରାଧିକା ତ ରାଜା ହେବେ ଆଉ କୃଷ୍ଣ ତ କଟୁଆଲ ହେବେ, ପୁଣି ପାତ୍ର ମନ୍ତ୍ରୀ ତ ଲୋଡ଼ା ।

ବୃନ୍ଦା—ଲଳିତେ ! ଚନ୍ଦ୍ରାବଳୀ ମନ୍ତ୍ରୀ ପଦରେ ନିଯୁକ୍ତ ହୁଅନ୍ତୁ ଆଉ ତେମେ ପାତ୍ର ହୋଇ ଏ ବୃନ୍ଦାବନ ରାଜ୍ୟର ହାନି ଲାଭ ସବୁ ବୁଝିବାରେ ତତ୍ପର ହୁଅ ।

ଚନ୍ଦ୍ରାବଳୀ—ବୃନ୍ଦେ ! ତେମେ ଛମୁକରଣ ପଦଟିକି ନିଅ ।

ବୃନ୍ଦା—ପ୍ରିୟସଖିମାନଙ୍କର ଯେ ଇଚ୍ଛା ।

ଲଳିତା—ସଖି ! ବିଶାଖା କିସମୀ ହୁଅନ୍ତୁ ।

ଚନ୍ଦ୍ରାବଳୀ-ହଁ ଗୋ ବିଶାଖାଙ୍କୁ ସେଇ ଉପାଧିଟି ସାଜିବ ।

ବିଶାଖା—ସଖି ଚନ୍ଦ୍ରାବଳି ! ତମ ପଦ୍ମା ତ ବଡ଼ ଚତୁରୀ, ତାଙ୍କୁ କେଉଁ ଉପାଧି ଦେଉଚ ?

ଚନ୍ଦ୍ରାବଳୀ-ବିଶାଖେ ! ପଦ୍ମା ଶୈବ୍ୟା ଦୁହେଁ ତମ ସଙ୍ଗରେ ମୋହରିରଗିରି କରିବେ ।

ବୃନ୍ଦା—ଲଳିତେ, ଯେଉଁ ସଖି ଯେଉଁ କାର୍ଯ୍ୟରେ ନିଯୁକ୍ତ ହେବେ ଆସ ତାହାର ଗୋଟିଏ ତାଲିକା କରିବା, ସେହି ପ୍ରଣାଳୀ ଅନୁସାରେ ଏ ବୃନ୍ଦାବନ ରାଜ୍ୟର ଭଲ ମନ୍ଦ ବୁଝିବାକୁ ସୁବିଧା ମିଳିବ ।

ଲଳିତା—ବୃନ୍ଦେ ! ଆମ ରାଧା ଗୋଟିଏ ତାଲିକା ପ୍ରସ୍ତୁତ କରି ମୋ ଜିମ୍ମା ଦେଇଛନ୍ତି ।

ବୃନ୍ଦା—ଲଳିତେ ! କଅଣ ଲେଖିଛନ୍ତି ପଢ଼ ।

ଲଳିତା—ସଖି ବିଶାଖେ ! ଏହି ତାଲିକାଟି ଧର ମୋ ସଙ୍ଗରେ ଉଚ୍ଚସ୍ୱରେ ପଢ଼ିବଟି ?

ବିଶାଖା—ହଉ ସଖି !

( ତାଲିକାଙ୍କିତ ପଦ୍ୟ )

ମନ୍ତ୍ରୀ ପଦ ନେବେ ପ୍ରିୟସଖି ଚନ୍ଦ୍ରାବଳୀ ।
ପାର୍ଶ୍ୱ ଉପାଧି ପାଇବେ ଲଳିତା ସୁନ୍ଦରୀ । ୧ ।
ବନେଶ୍ୱରୀ ବୃନ୍ଦା ହେବେ ଶ୍ରୀଅମ୍ଭୁଁ କରଣ ।
ବିଶାଖା କସ୍ତୁରୀ ପଦେ ହୋଇବେ ଭୂଷଣ । ୨ ।
ସୈବ୍ୟା ପଦ୍ମା କରିବେ ଗୋ ମୋହରିରଗିରି ।
ନାଜର ପଣେ ରହିବେ ଶଦା ସହଚରୀ । ୩ ।
ପେସ୍କାର ହେବେ ଚମ୍ପକ ଲତିକା ଚତୁରୀ ।
ତୁଙ୍ଗବିଦ୍ୟା ହୋଇବେ ଭଣ୍ଡାର ଅଧିକାରୀ । ୪ ।
ଦାରୋଗା ହୋଇବେ ଇନ୍ଦୁରେଖା ଇନ୍ଦୁମୁଖୀ ।
ମୁନସି ପଦେ ରହିବେ ସୁଦେବୀକା ସଖୀ । ୫ ।
ରଙ୍ଗଦେବୀ ବୃନ୍ଦାବନେ ହେବେ ଜମାଦାର ।
ଭଦ୍ରା ଶ୍ୟାମଳା ଅର୍ଦ୍ଦୋଳୀ ସିପାହି ନଫର । ୬ ।
ଅନଙ୍ଗ ମଞ୍ଜରୀ ଆଦି ଯେତେକ ମଞ୍ଜରୀ ।
କରିବେ ଏମାନେ ରାଜ ହୁକୁମକୁ ଜାରି । ୭ ।
ଇତି । ଶ୍ରୀମତୀ ବୃଷଭାନୁ ରାଜକୁମାରୀଙ୍କ ସ୍ୱାକ୍ଷର ।

ଚନ୍ଦ୍ରାବଳୀ—ଲଳିତେ ! ଆମ ରାଧାରାଣୀ ତ ଭଲ କଥାଟିଏ ଭୁଲି ଯାଇଛନ୍ତି ? ସମସ୍ତଙ୍କ ଗୃକେର ଲେଖିଲେ, ଅଉ କନ୍ଦୁଆଲଙ୍କ କର୍ତ୍ତବ୍ୟ କର୍ମ୍ମତ ଲେଖିଲେ ନାହିଁ ? ତାଙ୍କ ହୁକୁମ ନାମାଟି ଫେରେଇ ଦିଅ ।

ଲଳିତା—( ଶ୍ରୀରାଧାଙ୍କୁ ଚାହିଁ ) ପ୍ରେମମୟି ! କନ୍ଦୁଆଲଙ୍କ ପ୍ରତି ଯାହାକ କର୍ତ୍ତବ୍ୟ ତା ଆମେମାନେ କଥାଏ ଦକଥା କହିବୁଁ, ଏହା ମଞ୍ଜୁର ହେଉ ।

ଶ୍ରୀରାଧା—ଲଳିତେ ! କଣ କହିବାର ଅଛି ତା' ପ୍ରକାଶକର ।

ଲଳିତା—ତେବେ ଶୁଣ ।

( ଗୀତ )

କହୁଅଛ ହୋଇ ଶ୍ୟାମ ଶ୍ରୀ ଛାମୁରେ ଥିବେ ।
କହୁ ରାଧେ ରାଧେ ବୋଲି ପହରା ସେ ଦେବେ ॥
ଅଙ୍କ ପରମାଣେ କରଯୋଡ଼ ରହିଥିବେ ।
ହାଜର ହାଜର ବୋଲି ମୁଖେ କହୁଥିବେ ॥
ଅଗେ ମୋହନଙ୍କଠାରୁ ଦସ୍ତଖତ୍ ନେବା ।
କହୁଅଛ ପଣ ଶାଢୀ ଶିରେ ବାନ୍ଧଦେବା ॥

( ବ୍ରଜବାସୀ )

ଶ୍ରୀରାଧା—ସଖି ! ତମମାନଙ୍କ ମନକୁ ଯେପରି ସୁନ୍ଦର ଦିଶୁଛି ସେପରି କର ।

ଶ୍ରୀକୃଷ୍ଣ—ସଖି ! ମୋର ଗୋଟିଏ ନିବେଦନ ଅଛି ।

ଲଳିତା - ନାଗର ! କଅଣ କହୁଚ କହ ।

ଶ୍ରୀକୃଷ୍ଣ—ତେବେ ଶୁଣ । ( ଗୀତ )

ମୋର ଏକ ନିବେଦନ ଶୁଣ ସଖିଗଣ ।
ରାଇରାଜାଙ୍କର ଉପାସ୍ୟରମାନ ଅଣ ॥
ସୁକନକ ଦଣ୍ଡ ଛତ୍ର ଅଢେଣୀ ତରାଣ ।
ଖଦୀ ଚାମର ଅଲଟ ପଙ୍ଖା ବୃନ୍ଦାବାସ ॥
ଛଡ଼ବାଡ଼ ରହିଥିବ ଚନ୍ଦନ କର୍ପୂର ।
ରାଇରାଜାଙ୍କ ରତନ ପାଗ ପୁଷ୍ପହାର ॥
ବଜାଅ ଗୋ ବଜଘୋଷ ମହୁରୀ ମର୍ଦ୍ଦଳ ।
ବୀଣା ରବା ସୀତାର ଯେ କଂସାଳ ଝାଞ୍ଜାଳ ।
ଶଙ୍ଖ ଭେରୀ ତୁରୀ ଶିଙ୍ଗା ବଜାଅ ମହୁରୀ ।
ବଜାଅ ବୀର କାହାଳୀ ସୁଯତନ କରି ॥
ପୁଷ୍ପହାର ଚୂତପତ୍ର ତୋରଣା ବାନ୍ଧନେ ।
ପୂର୍ଣ୍ଣକୁମ୍ଭ ରମ୍ଭାବୃକ୍ଷ ସ୍ଥାପ ସୁବିଧାନେ ॥

ରତ୍ନସିଂହାସନେ ବସେ କରନ୍ତୁ କିଶୋରୀ ।
ଦିଅ ମୋତେ କଣ୍ଠୁଆଳ ପଣ ନଉକରୀ ॥
ଏହା ନିବେଦନ ମୋର ଅଗୋ ସଖିଗଣ ।
ଯାହା ଆଜ୍ଞା ହେବ ତାହା କରିବି ପାଳନ ॥

( ବ୍ରଜବାସୀ )

ବୃନ୍ଦା —( ସଖିମାନଙ୍କ ପ୍ରତି ) ସଖି ! ଶ୍ରୀକୃଷ୍ଣଙ୍କରତ ଏଥିପ୍ରତି ଅସମ୍ମତ ନାହିଁ ? ତାଙ୍କୁ କଣ୍ଠୁଆଳ ବେଶଟି ସଜାଇ ଦିଅ ।

ଲଳିତା – ବୃନ୍ଦେ ! ତେମେ ଶ୍ରୀକୃଷ୍ଣଙ୍କୁ କଣ୍ଠୁଆଳ ବେଶ ସଜାଅ କି, ଆମେମାନେ ଶ୍ରୀରାଧାଙ୍କୁ ରାଜ ବେଶରେ ମଣ୍ଡନ କରୁଛୁଁ । ( ସଖିଙ୍କ ପ୍ରତି ) ଆସ ଆସ ଗୋ ରାଇରାଜା ବେଶରେ ନିଯୁକ୍ତ ହେବା ଆସ ।

ସମସ୍ତେ—( ଶ୍ରୀରାଧାଙ୍କୁ ରାଜବେଶ କରିବା ଅଭିନୟ )

ବୃନ୍ଦା—( ଶ୍ରୀକୃଷ୍ଣଙ୍କୁ କଣ୍ଠୁଆଳ ବେଶ କରିବା ଅଭିନୟ )

ବିଶାଖା—( ବେଶ ଶେଷରେ ) ସଖି ! ବେଶତ ଶେଷ ହେଲା, ଏଥର ଆମ ରାଇରାଜା ସିଂହାସନରେ ବସନ୍ତୁ ।

ଲଳିତା—ହଁ ଗୋ ! ଆସ ପହଣ୍ଡ ମଣାଇ ସିଂହାସନକୁ ନେବା ( ଶ୍ରୀରାଧାଙ୍କ ପ୍ରତି ) ବୃନ୍ଦାବନେଶ୍ୱରି ! ଏ ରତ୍ନସିଂହାସନରେ ବସେ କର ।

( ଗୀତ )

(ଏ) ନବରତ୍ନ ସିଂହାସନେ ବସ ଗୋ କିଶୋରି ।
ଆସ ଆସ ପ୍ରାଣଧନ ବୃନ୍ଦାବନେଶ୍ୱରି ।
ଆସ ଆସ ଗୋ ବଦନ । ମୋହନ ମନମୋହନୀ ନାଗରୀ ରତନ ॥

ସମସ୍ତ ସଖିଗଣ — ଧର ଗୋ ଲଳିତେ ଏ କନକ ଦଣ୍ଡଛତ୍ର ।
ଢ଼ାଳ ଗୋ ଶ୍ୱେତଚାମର ବିଶାଖେ ତୁରିତ ॥
ଅଗୋ ଚନ୍ଦ୍ରା ସହଚରି ! ବଜାଅ ବୀର କାହାଳୀ ଧୀର ଧୀର କରି ॥
ମୁକୁତା ଝାଲର ପଙ୍ଖା ଧରେ ରଙ୍ଗଦେବି !
ଚନ୍ଦ୍ର ସୂର୍ଯ୍ୟ ବାଣଧର ସଙ୍ଗେନ ସୁଦେବି !

ଅଗୋ ଚମ୍ପକ ଲଲନା । ଉଡ଼ାଅ ଗୋ ହରଷରେ ଏକନଶି ବାନା ॥
ଶଶୀରେଖା କେଖାପୁଚ୍ଛ କର ଗୋ ଶୁଳନ ।
ତୁଙ୍ଗବଦ୍ୟା ଛୁଗ ଝଣ୍ଡା କର ଗୋ ଧାରଣ ।
ସବେ ଝଠ ଗୋ ଗହନେ ! ମନ୍ତ୍ରୀପଣେ ଚନ୍ଦ୍ରାବଳୀ ବସ ସନ୍ନିଧାନେ ॥
ଅଗୋ ବୃନ୍ଦା ସତ୍ୱରର ବିଳମ୍ବ ନ କର ।
କଠୁଆଲଙ୍କୁ ସମ୍ମୁରେ କରାଅ ହାଜର ।
ରାଣୀରାଜାଙ୍କ ହୁକୁମ । ପାଳନ କରନ୍ତୁ କଠୁଆଲ ଘନଶ୍ୟାମ ॥
( ବ୍ରଜବାସୀ )

( ଗୀତ ଗାଇ ଗାଇ ସଖିମାନେ ଶ୍ରୀରାଧାଙ୍କୁ—ନବରତ୍ନ ସିଂହାସନରେ ବସାଇବା ଓ ଚନ୍ଦ୍ରାବଳୀ ମନ୍ତ୍ରୀ ହୋଇ ରାଣୀରାଜାଙ୍କ ବାମ ପାଶରେ ବସିବା ଏବଂ ସଖି ସମୂହ ନିଜ ନିଜ ସେବାରେ ରହିବାର ଅଭିନୟ ) .

ଲଳିତା—( ବୃନ୍ଦାଙ୍କ ପ୍ରତି ) ବୃନ୍ଦେ ! କଠୁଆଲଙ୍କୁ ଶୀଘ୍ର ସିଂହାସନ ତଳେ ହାଜର କରାଅ ।

ବୃନ୍ଦା—( ଶ୍ରୀକୃଷ୍ଣଙ୍କ ପ୍ରତି ) ବୃନ୍ଦାବନ କଠୁଆଲ ! ଚାଲ ରାଣୀରାଜାଙ୍କ ହୁକୁମ ପାଳିବ ଚାଲ ( ଏହା କହି ନେବା )

ଲଳିତା—(ସିଂହାସନ ତଳେ କଠୁଆଲଙ୍କୁ ଦେଖି ରାଣୀରାଜାଙ୍କ ପ୍ରତି) ବୃନ୍ଦାବନେଶ୍ୱରି ! କଠୁଆଲଙ୍କ ପ୍ରତି କି ଆଦେଶ ହେଉଛି ତାହା ଶୀଘ୍ର କର ।

ଶ୍ରୀରାଧା—( ଚନ୍ଦ୍ରାବଳୀଙ୍କ କାନମୂଳେ ତୁନି କରି କହିବା ଅଭିନୟ )

ଚନ୍ଦ୍ରାବଳୀ—( ବୃନ୍ଦାଙ୍କ ପ୍ରତି ) ବୃନ୍ଦେ ! ରାଣୀରାଜାଙ୍କର ହୁକୁମ ହେଉଛି, ଶ୍ୟାମ କଠୁଆଲଙ୍କ ମସ୍ତକରେ କଠୁଆଲଗିରି ଶାଢ଼ୀ ବାନ୍ଧି ଦିଅ ।

ଲଳିତା—( ବୃନ୍ଦାଙ୍କ ହାତକୁ ଶାଢ଼ୀ ବଢ଼ାଇ ଦେବା ଓ ବୃନ୍ଦା ନିଜ ହସ୍ତରେ ଶ୍ରୀକୃଷ୍ଣଙ୍କ ମସ୍ତକରେ ବାନ୍ଧିବା ଅଭିନୟ )

ଶ୍ରୀରାଧା—(ପୁଣି ଚନ୍ଦ୍ରାବଳୀଙ୍କ କାନମୂଳେ ତୁନି କରି କହି ଦେବାର)

ଚନ୍ଦ୍ରାବଳୀ—( ଶ୍ରୀକୃଷ୍ଣଙ୍କୁ ଚାହିଁ ) କହୁଅଛ ! ଏଥର ବୃନ୍ଦାବନଯାକ
ବୁଲି ରାଇରାଜାଙ୍କର ଜୟ ଘୋଷଣା ଦିଅ ।

ଶ୍ରୀକୃଷ୍ଣ—(କରଯୋଡ଼ି) ବୃନ୍ଦାବନେଶ୍ୱରି ! ମୋର ନିବେଦନ ଶ୍ରବଣ
କରନ୍ତୁ ।

ଗୀତ ।

ଅଗୋ ବୃନ୍ଦାବନେଶ୍ୱରି ! ନାଗରୀ ରତନ ।
କର୍ଣ୍ଣେ ଶ୍ରବଣ କର ଏ ମୋ ନିବେଦନ ଗୋ ।
ଯଦି କହୁଅଛ ହେବାକୁ ମୁହିଁ ବୃନ୍ଦାବନେ ।
ଶୃଙ୍ଖଳୀ କରେ କି କେହି ବିନା ବଂଶୀଧନେ ଗୋ ॥
ବରତନ ଦିଅ ମୋତେ ମୋହନ ବାଂଶରୀ ।
ବୁଲିବି ଏ ବନେ ରାଧେ ଜୟ ବୋଲି କରି ଗୋ ॥
ବଂଶୀସ୍ୱନେ ରାଇରାଜାଙ୍କର ଜୟଧ୍ୱନି ।
ଉଚ୍ଚାରିଲେ ସୁନ୍ଦର ଶୁଭିବ ସିନା ପୁଣି ଗୋ ॥
ଦାନକର ମୋତେ ଧନି ! ବଂଶୀ ବରତନ ।
ଶ୍ରୀପଦ୍ମରେ ମୋର ମାତ୍ର ଏହି ନିବେଦନ ଗୋ ।
( ବ୍ରଜବାସୀ )

ଶ୍ରୀରାଧା—( ଲଳିତାଙ୍କୁ ) ଲଳିତେ ! ଏ ମୋହନ ବଂଶୀଟି କହୁଅଛନ୍ତି
ଫେରାଇ ସ୍ୱରୂପ ଦିଅ । ( ଏହା କହି ବଂଶୀ ବଢ଼ାଇ ଦେବା )

ଲଳିତା—( ବଂଶୀଦାନ ପୂର୍ବକ ) କହୁଅଛ ! ନିଅ, ଏ ମୋହନ-
ବଂଶୀସ୍ୱନରେ ରାଇରାଜାଙ୍କର ଜୟ ଘୋଷଣା ଦିଅ ।
( ଏହା କହି ବଂଶୀ ଦାନ କରିବାର )

ଶ୍ରୀକୃଷ୍ଣ—( ବାଂଶୀ ପାଇ ମନ୍ଦହାସ ପୂର୍ବକ ) ଜୟ ରାଧେ !
ଜୟ ରାଧେ ! ! ଜୟ ରାଧେ ! ! !

ଗୀତ—କାଉିନ ସ୍ୱର ।

ଜୟ ରାଧେ ! ରାଧେ ରାଧେ ବୃନ୍ଦାବନେଶ୍ୱରୀ ।
ଜୟ ରାଧେ ! ରାଧେ ରାଧେ ନବୀନକିଶୋରୀ । ୧ ।

ଜୟ ରାଧେ ! ରାଧେ ରାଧେ ଭାନୁରତ୍ନମାଳ ।
ଜୟ ରାଧେ ! ରାଧେ ରାଧେ ଚନ୍ଦ୍ରହେମଗୋରା । ୨ ।
ଜୟ ରାଧାରାଣୀ ! ଜୟ କୃଷ୍ଣବଦାରଣୀ । ० ।
( ବ୍ରଜବାସୀ )

ଲଳିତା—( ଶ୍ରୀକୃଷ୍ଣଙ୍କପ୍ରତି ) କହୁଥିଲ ! ତେମେ ବଂଶୀ ବଜାଅ ଅମ୍ଭେମାନେ ଜୟ ଦେବୁଁ ।

ଲଳିତା—(ସଖିମାନଙ୍କ ପ୍ରତି) ସଖି ! ସମସ୍ତେ ମିଳି ରାଧାରାଣୀଙ୍କ ଜୟ ଦିଅ ।

ସଖିଗଣ—( ଏକସ୍ୱରେ )

ଗୀତ

ଜୟ ଜୟ ରାଧାରାଣୀ କୃଷ୍ଣବଦାରଣୀ ।
ବୃନ୍ଦାବନେଶ୍ୱରୀ ନଳନାଳନଧାରଣୀ ।
ଜୟ ବୃଷଭାନୁସୁତା କାମକଳ୍ପଲତା ।
ଗାନ୍ଧର୍ବିକେ, ପ୍ରେମମୟୀ ସୁଲକ୍ଷଣ ଯୁତା ॥
ଜୟ ରାଧାରାଣୀ ! କୃଷ୍ଣଅଭିସାରଣୀ ।
ନକୃଷ୍ଣବଦାରଣୀ ( ଜୟ ରାଧାରାଣୀ ! )
ନୀଳପଦ୍ମଧାରଣୀ ! ( ଜୟ ରାଧାରାଣୀ ! )
ଦୁଃଖ ତାପ ହାରଣୀ ! ( ଜୟ ରାଧାରାଣୀ ! )

ନଃ—

(ବ୍ରଜବାସୀ )

( ସଖିଗଣ ସମସ୍ୱରେ ଗାନ କରୁଥିବା ଓ ଉଦଣ୍ଡ ନୃତ୍ୟ-ସମୟେ ଧୀରେ ଧୀରେ ପରଦା ପତନ )

✤ ଯ ବ ନି କା ✤

( ଇତି ଶ୍ରୀ ରାଇରାଜା ନାଟକ ସମ୍ପୂର୍ଣ୍ଣ )

କଟକ, ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କଦ୍ୱାରା ମୁଦ୍ରିତ ।

# ନିବେଦନ ।



ଏତଦ୍ଦ୍ୱାରା ଭକ୍ତବୃନ୍ଦଙ୍କୁ ଜଣାଉଅଛୁଁ କି—ବ୍ରଜବାସୀ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ରଚିତ ନିମ୍ନଲିଖିତ ବ୍ରଜଲୀଳା ନାଟକଗୁଡ଼ିକ ଅଭିନୟ ତ ଦୂରର କଥା ; ପାଠ କଲାମାତ୍ରେ ଯୁଗଳ ପ୍ରେମରେ ମନ-ମଧୁକର ମୁଗ୍ଧ ହୋଇ ଯାଏ ।

ଅଦ୍ଭୁତ, କରୁଣ, ବୀର, ରୌଦ୍ର, ଶାନ୍ତ ପ୍ରଭୃତି ନବରସର ବିକାଶରେ ହୃଦୟ ବିଗଳିତ ହୋଇଯାଏ, ଏ ସର ଭକ୍ତି ରସର ବିପୁଳ ପ୍ଲାବନରେ ଭକ୍ତମାନଙ୍କ ହୃଦୟରେ ହରିଭକ୍ତିର ପ୍ରସ୍ରବଣ ହୋଇପଡ଼େ । ଯେଉଁମାନେ ମୋହନ ଗୋସ୍ୱାମୀଙ୍କ ରାସଦଳରେ ଏ ମହାଶୟଙ୍କ ନାଟକୀୟ ଛଟା ଦେଖି ଅଛନ୍ତି ସେମାନଙ୍କୁ କିଛି ଅବିଦିତ ନ ଥିବ, ବିଶେଷ ଲେଖିବା ବୃଥା, ପୁସ୍ତକ ଦେଖିଲେ ଜାଣି ପାରିବେ । ଇତି ।

ନାଟକର ତାଲିକା

| | | | |
|---|---|---|---|
| ୧ | ଶ୍ରୀକୃଷ୍ଣଙ୍କ ଜନ୍ମ ଓ ବାଲ୍ୟଲୀଳା | ୬ | ରାଇରାଜା |
| ୨ | ବସନ୍ତ ଉତ୍ସବ | ୭ | କୁଞ୍ଜଲୀଳା |
| ୩ | ବିରହ ମାନ | ୮ | ଯୁଗଳ ମିଳନ |
| ୪ | ଦୁର୍ଜ୍ଜୟମାନ | ୯ | ନିକୁଞ୍ଜମିଳନ |
| ୫ | ମାନଭଞ୍ଜନ | ୧୦ | ଶରତ୍‌ରାସ |

ପ୍ରାପ୍ତିସ୍ଥାନ —

**ଶ୍ରୀ ଦାଶରଥି ଦାସ,**

ବାଲୁବଜାର, ପୋଃ ଅଃ ଚାନ୍ଦିନୀଚୌକ, କଟକ ।

Printed-R. N. Rath, The Satyabadi Press,
CUTTACK. 1929.